# ଈଶ୍ୱରଙ୍କ ପାଖକୁ ଚିଠି

ଏ କଥା ଶୁଣି ତୁମେ ହୁଏତ ସତ କରିବ ନାହିଁ । ସତ କର ବା ନ କର କଥାଟା ଯେ ସତ ଏଥିରେ ତିଳେ ହେଲେ ସନ୍ଦେହ ନାହିଁ । ଦିନେ ଜମିଦାରୀ ତମାମ ଏଇ କଥାଟା ସମସ୍ତଙ୍କ ମୁହଁରୁ ଶୁଣାଗଲା । ଯେ କହିଲା ସେ ହସିଲା, ଯେ ଶୁଣିଲା ସେ ହସିଲା ।

ଗଞ୍ଜାମ ଜିଲ୍ଲାର ଗୋଟିଏ ଜମିଦାରୀ; ଅତି ବଡ଼ ନୁହେଁ କି ଅତି ସାନ ନୁହେଁ । ସେଇ ଜମିଦାରୀର ନାଁ ଶୁଣି ତୁମର କିଛି ଲାଭ ନାହିଁ । ନ ଶୁଣିଲେ କିଛି କ୍ଷତି ନାହିଁ ମଧ୍ୟ । ଧର, ନାଁଟା 'ବଡ଼ଗଣ୍ଡ' । ସେଇ ବଡ଼ଗଣ୍ଡ ଜମିଦାରୀ ଭିତରର ଗୋଟିଏ ଅତି ଗରିବ ଚାଷୀର କଥା ଏ । ଚାଷୀଟି ଏତେ ଗରିବ ଯେ ତା କାହାଣୀ ଶୁଣିଲେ ଅନେକ ସମୟରେ କଳ୍ପନା ବୋଲି ମନେ ହେବ । ଦାଣ୍ଡରୁ ଆଣିଲେ ଖାଏ, ନ ଆଣିଲେ ଉପାସ ରହେ । ବର୍ଷସାରା ଖରା, ବର୍ଷା, କାକର ସବୁ ଦେହରେ ଲାଗେ, କିନ୍ତୁ ପେଟ ପୋଷି ପାରେ ନାହିଁ । ଆଦାୟର ପନ୍ଦରପଣରୁ ବେଶୀ ଯାଏ ସାହୁକାର ଓ ଜମିଦାରର ଘରକୁ । ଫସଲ ଆଦାୟ କରି ତା ପେଟ ପୁରେ ନାହିଁ, ପାଣି ପାଖରେ ରହି ତା ଶୋଷ ମରେ ନାହିଁ ।

ଦିନେ ସେ ବଡ଼ ସାହସ କରି ବସିଲା—ସମସ୍ତେ କହୁଚନ୍ତି, ଈଶ୍ୱର ଅଛନ୍ତି, ଈଶ୍ୱର ଦେଉଛନ୍ତି, ଈଶ୍ୱର ନେଉଛନ୍ତି, ଡାକିଲେ ସେ ମଧ୍ୟ ଶୁଣୁଚନ୍ତି, କାହା କାହାକୁ ଦେଖା ମଧ୍ୟ ଦେଉଚନ୍ତି । ମୁଁ ତ ସେତେ ଭାଗ୍ୟବାନ ନୁହେଁ; ଅନ୍ତ, ତାଙ୍କ ପାଖକୁ ଖଣ୍ଡିଏ ଚିଠି ଲେଖେ । ଏହା ଭାବି ଦିନେ ସେ ଚିଠି ଖଣ୍ଡିଏ ଲେଖିଲା—

“ପ୍ରିୟ ଈଶ୍ୱର,

ଶୁଣୁଚି, ତୁମର ସବୁ ଅଛି । ତୁମେ ଟଙ୍କା ପଇସା କାରବାର ନ କରୁଥିଲେ ମଧ୍ୟ ତୁମେ ସୃଷ୍ଟି କରୁଚ । ସମସ୍ତଙ୍କୁ ତୁମେ ପାଳୁଚ ବୋଲି ଲୋକେ କୁହାକୁହି ହେଉଚନ୍ତି । ତୁମେ ଅନୁଗ୍ରହ କରି ଗଞ୍ଜାମ ଜିଲ୍ଲା ବଡ଼କେଣ୍ଡ୍ର ଜମିଦାରୀ ଦଗପାଣ୍ଡି ଡାକଘର ଠିକଣାରେ ମୋ ପାଖକୁ ଷହେଟି ଟଙ୍କା ଚଞ୍ଚଳ ପଠାଇ ଦିଅ । ମୋତେ ଏ ଭୋକ ଉପାସରୁ ରକ୍ଷାକର । ଇତି ।

ଆପଣଙ୍କର

ଆଜ୍ଞାଧୀନ

ଫୁକୁରିଆ ସାଉଡ ।”

ଫୁକୁରିଆ ଚିଠି ଖଣ୍ଡିକ ଲେଖି ସାରି ଦଗପାଣ୍ଡି ଡାକଘର ଦୁଆରେ ଯାଇ ପହଞ୍ଚିଲା । ସେଠାରେ ଡାକବାଲାକୁ ଦେଖି କହିଲା—“ଏ ଚିଠିଟି ମୋର ନିଅ । ଈଶ୍ୱରଙ୍କର ପୁରା ଠିକଣା ମୋତେ ଜଣା ନାହିଁ । କିଏ କିଏ କହୁଚନ୍ତି ତାଙ୍କ ଠିକଣା—ମୁ । ସ୍ୱର୍ଗ, ପୋଃଅଃ ସ୍ୱର୍ଗ, ଜିଲ୍ଲା ବୈକୁଣ୍ଠ । ତୁମେ ଠିକ୍ ଜାଣିଥିଲେ କହ । ଡାକବାଲା ନା, ତୁମେ ଜାଣିଥିବ ।”

ଫୁକୁରିଆର ଏ କଥା ଶୁଣି ଦଗପାଣ୍ଡିର ଡାକବାଲା ଟିକିଏ ହସିଲା । କହିଲା—“ଆରେ ଓଲୁ, ଆମ ଏ ଅଫିସର ଚିଠି କଣ ଈଶ୍ୱରଙ୍କ ପାଖକୁ ଯାଏ ? ତୁ ତାଙ୍କ ନିକଟେ ଯାଇ କହ, ନ ହେଲେ ଆଉ କାହା ହାତରେ ପଠା ! ଡାକରେ ଏ ଚିଠି ଯାଇ ପାରିବ ନାହିଁ ।”




ଡାକବାଲା ମୁହଁରୁ ଏ କଥା ଶୁଣି ସୁକୁରିଆ ... କହିଲା — "ତୁମେ ତ ବଡ଼ ଜାଲିଆ ଲୋକ ଦେଖୁଛି ! ତୁମେ ଜଣେ ସରକାରୀ ଦରମାଖିଆ ଚାକର କି ? ଏ ଜମିଦାରୀ ଭିତରେ ତ କେଉଁ ଭଲ ଲୋକ ନାହାନ୍ତି ବୋଲି ଚିଠି ମୁଁ ଖୋଦ ଈଶ୍ୱରଙ୍କ ପାଖକୁ ପଠାଉଛି, ଆଉ କହୁଛ ଜଣେ ନା କାହା ହାତରେ ପଠାଅ ! ତୁମେ ବଡ଼ ଖରାପ ଲୋକ, ବୁଝିଲ ।"

ବାହାରେ ଡାକବାଲା ଓ ସୁକୁରିଆର ଏପରି କଥାବାର୍ତ୍ତା ଘର ଭିତରେ ଡାକମାଷ୍ଟର ବାବୁ ଶୁଣିପାରି ବାହାରକୁ ଆସିଲେ । ସେ ମନେ ମନେ ହସି, ଡାକବାଲାକୁ ଠାରି ଅଡ଼େଇ ଦେଇ ସୁକୁରିଆକୁ ଚାହିଁ କହିଲେ—

"ଅଛ, ଶୁଣ ଶୁଣ । ସେ କିଛି ଜାଣେ ନାହିଁ । ମୁଁ ଠିକଣା ଲେଖି ଦେବି । ତୁମ ଚିଠି ନିଶ୍ଚୟ ଈଶ୍ୱରଙ୍କ ପାଖକୁ ପଠାଯିବ ।"

ସୁକୁରିଆ ଖୁବ୍ ଆଗ୍ରହପୂର୍ଣ୍ଣ ଦୃଷ୍ଟିରେ ଡାକମାଷ୍ଟରଙ୍କୁ ଚାହିଁ ପଚାରିଲା—

"ସତ ? ପଠାଇ ଦେବ ! ଜଣେ ରେଜଷ୍ଟ୍ରୀ କରିବ ନା ବେରିଂରେ ପଠାଇବ ?"

ଡାକମାଷ୍ଟର ସାଙ୍ଗେ ସାଙ୍ଗେ ଉତ୍ତର ଦେଲେ—"ରେଜଷ୍ଟ୍ରୀ ହେବ । ରେଜଷ୍ଟ୍ରୀ ନ କଲେ ତୁମ ଚିଠି କୁଆଡ଼େ ହଜିଯାଇ-ପାରେ । ଦିଅ ଚିଠି ଦିଅ ।"

ସୁକୁରିଆର ଆନନ୍ଦର ସୀମା ରହିଲା ନାହିଁ । ସେ ଚିଠିଟି ଡାକମାଷ୍ଟରଙ୍କ ହାତକୁ ବଢ଼ାଇ ଦେଇ ପଚାରିଲା—"ଆଜ୍ଞା, ଏଥିରେ କେତେ ପଇସା ଲାଗିବ ?"

ଡାକମାଷ୍ଟର କହିଲେ—"କେତେ ଲାଗିବ ? ସ୍ୱର୍ଗ ତ ଏଠାରୁ ଅନେକ ବାଟ । ଏତେ ବାଟକୁ ଡାକ ଟିକଟ ଅନେକ ଲାଗନ୍ତା ।

ମାତ୍ର ଈଶ୍ୱରଙ୍କ ପାଖକୁ ଯିବ ନା, ତାଙ୍କ ଚିଠିରେ ଟିକଟ ଲଗେ ନାହିଁ, ବିନା ଟିକଟରେ ରେଜିଷ୍ଟ୍ରୀ ହୁଏ । ତେଣୁ ତୁମ ଚିଠିଟି ମାହାଳିଆ ଯିବ ।"

ସୁକୁରିଆ ଏ କଥା ଶୁଣି ଭାରି ଖୁସି ହୋଇଗଲା । ଡାକବାଲା ଆଡ଼କୁ ମୁହଁ ବୁଲାଇ ଟିକିଏ ଥଟ୍ଟା କରି ହସି ଦେଲା । ତା ପରେ ଡାକମାଷ୍ଟରଙ୍କୁ ଏକ ଦଣ୍ଡବତ ହୋଇ ଖୁସିରେ ଗୀତ ଗାଇ ଗାଇ ଗାଁକୁ ଫେରିଗଲା ।

ବଗପାଣ୍ଡି ଡାକମାଷ୍ଟର ବାବୁଟି ଭାରି ବୁଦ୍ଧିଆ ଲୋକ । ସେ ସୁକୁରିଆର ଚିଠି ଖଣ୍ଡିକ ବଡ଼ଗଣ୍ଡ ରଜାଙ୍କ ପାଖକୁ ପଠାଇ ଦେଲେ । ରଜାଙ୍କ ଦରବାରରେ ଚିଠି ପଢ଼ାଗଲା । ସେଠାରେ ତାହା ଯେ ଶୁଣିଲା ସେ ହସିଲା । ବଡ଼ଗଣ୍ଡ ରଜା ବଡ଼ ଅତ୍ୟାଚାରୀ ରଜା । ଚାରିଆଡ଼େ ତାଙ୍କର ଦୁର୍ନାମ ଶୁଣାଯାଉଥିଲା । ସେଥିରୁ ସେ ରକ୍ଷା ପାଇବାକୁ ବାଟ ଖୋଜୁଥିଲେ । ଚିଠି ଶୁଣି କହିଲେ—"ଲୋକଟା ଭାରି ସାଦାସିଧା, ସରଳ । ଅଚ୍ଛା, ତାକୁ ଆମ ଭଣ୍ଡାରରୁ କିଛି ଟଙ୍କା ଦେବା । ତାହା ହେଲେ ଆମେ ବଡ଼ ଦୟାଳୁ ରଜା ବୋଲି ଚାରିଆଡ଼େ ପ୍ରଚାର ହେବ ।" ଏହା କହି ସେ ଶହେଟି ଟଙ୍କା ମଞ୍ଜୁର କଲେ । ଏଥିରେ ମନ୍ତ୍ରୀ ଓ ପାଖ ଲୋକେ ଆପତ୍ତି ଉଠାଇ କହିଲେ—"ଶହେ ଟଙ୍କା ବେଶୀ ହୋଇଗଲା ।" ରଜା ତହୁଁ ପଚିଶ ମଞ୍ଜୁର କଲେ । ଭାବିଲେ, ଶହେ ହେଉ ବା ପଚିଶ ହେଉ, ଗରିବ ପ୍ରଜାଙ୍କର ହଠାତ୍ ପ୍ରିୟ ହେବାପାଇଁ ଏ ଗୋଟାଏ ଭଲ ବାଟ ।

ଏହି ଘଟଣାର ସାତଦିନ ପରେ ବଡ଼ଗଣ୍ଡ ରଜାଙ୍କ ପାଖେ ଆଉ ଖଣ୍ଡିଏ ଚିଠି ଆସି ପହଞ୍ଚିଲା । ସେହି ଚିଠି ଖଣ୍ଡିକ ସେହି ସୁକୁରିଆ ଈଶ୍ୱରଙ୍କ ପାଖକୁ ଲେଖିଥିଲା । ସେଥିରେ ଲେଖାଥିଲା:—

'ପ୍ରିୟ ଈଶ୍ୱର,

ତୁମେ ପଠାଇଥିବା ଟଙ୍କା ପାଇ ତୁମକୁ ଧନ୍ୟବାଦ ଦେଉଛି । ତୁମେ ମୋତେ ଏଣିକି ଯେବେ ସାହାଯ୍ୟ କଲେ ଟଙ୍କାଟାକୁ ସିଧା ସିଧା ମୋ ପାଖକୁ ପଠାଇବ । କାରଣ, ଆମର ରଜା ସବୁଥିରେ ଅଧେ ନିଜେ ରଖି ଅଧେ ରଇତଙ୍କୁ ଦିଅନ୍ତି । ଆମ ବିଲରେ ଧାନ ହେଲେ ସେ ନିଅନ୍ତି ଅଧେ, ଆମେ ନେଉ ଅଧେ । ଅଧେ ନ ନେଇ ସେ କେବେହେଲେ ଛାଡ଼ନ୍ତି ନାହିଁ । ଆଜି ମୁଁ ଯେଉଁ ପଚାଶ ଟଙ୍କା ପାଇଲି ସେ ନିଶ୍ଚେ ଅଧେ ରଖି ଏତକ ପଠାଇଛନ୍ତି । ଆରଥର ଟଙ୍କା ପଠାଇଲା ବେଳକୁ ତୁମେ ଟିକିଏ ତଦନ୍ତ କରି ବୁଝିବ ଆମେ ବଡ଼ଗଣ୍ଡ ଜମିଦାରୀର ପ୍ରଜାମାନେ ରଜାଙ୍କୁ ଅଧାକୁ ଅଧା ଭାଗ ଦେଇ କି ଦୁଃଖରେ ଅଛୁ । ଟଙ୍କା ପଠାଇଲେ ନିଜ ଲୋକ ଦେଇ ଟଙ୍କା ପଠାଇବ ସିନା ଏ ଡାକୁଆର କାହା ହାତରେ ହେଲେ ପଠାଇବ ନାହିଁ ।"

---

# ପୃଥିବୀରେ ମଣିଷ ଅଛନ୍ତି ?

## (୧)

ଦିନେ ସ୍ୱର୍ଗରେ ଖୁବ୍ ଚହଳ ପଡ଼ିଲା । କିଛିଦିନ ଧରି ପୃଥିବୀ ସମ୍ବନ୍ଧରେ ନାନା ଅପବାଦ ପ୍ରଚାରିତ ହେବା ଫଳରେ ଦେବତା-ମାନଙ୍କ ଭିତରେ ହୁଲସ୍ଥୁଲ ପଡ଼ିଗଲା । ଶେଷରେ ବ୍ରହ୍ମାଙ୍କ କାନଯାଏ ଖବର ଗଲା । ବ୍ରହ୍ମା ପ୍ରଥମେ ପ୍ରଥମେ ସେ କଥାକୁ ଆଦୌ କାନେଇ ନ ଥିଲେ । କିନ୍ତୁ ବେଳକୁ ବେଳ କଥା ପ୍ରବଳ ହେବାରୁ ସତ୍ୟାସତ୍ୟ ଅନୁସନ୍ଧାନ କରିବା ପାଇଁ ଦିନେ ଚିତ୍ରଗୁପ୍ତଙ୍କ ଅଫିସରେ ହାଜର ହୋଇ ପଚାରିଲେ—"କାହୋ, ଏସବୁ କଣ ଶୁଣା ଯାଉଛି ?"

ଦୁଇ ପରସ୍ତ ଚଷମା ମଡ଼ା ହୋଇଥିବା ଆଖି ଦୁଇଟାକୁ ମର୍ତ୍ତ୍ୟପୁରର ଜନ୍ମମରଣ ହିସାବ ଖାତାଅଡ଼ୁ ଉଠାଇ ଚିତ୍ରଗୁପ୍ତ ଉତ୍ତର ଦେଲେ—

"ଯାହା ଶୁଣା ଯାଉଛି କଛି ନୁହେଁ, କେବଳ ଆପଣଙ୍କ ଶାସନର ଅପବାଦ, ବୁର୍ନାମ କରିବା ପାଇଁ ଏ ଏକ ପ୍ରଚାର ମାତ୍ର ।

ବ୍ରହ୍ମା କହିଲେ—"ଏପରି କହିଦେଲେ ଚଳିବ କିପରି ? ତୁମେ ନିଜେ ଯାଇ ଥୋଡାଏ ଏନକ୍ୱାରି କରି ଆସ । ସେଥିରେ ତ ତୁମର ଲାଭ ଛଡ଼ା କ୍ଷତି ନାହିଁ । ବେଶ୍ ଦୁଇପଇସା ମିଳିବ । ଦରମା ଉପରେ କୁବେରଙ୍କ ଗଚ୍ଛାଘରୁ ମିଳା ଆସିବା ଦୁଇ ପିଠି ଟ୍ରାଭଲିଙ୍ଗ୍ ଆଲାଉନ୍ସ ପାଇବ । ପୁଣି, ମର୍ତ୍ତ୍ୟ ଲୋକର ଆମଦାନୀ କଥା ଛାଡ଼ । ବୁଲି ଆସିଲେ ପଇସା !"

ଚିତ୍ରଗୁପ୍ତ ଖୁବ୍ ଖୁସି ହୋଇ, ଜନ୍ମ ମରଣ ହିସାବ ଖାତାପତ୍ର ବାନ୍ଧୁ ବାନ୍ଧୁ କହିଲେ,"ମୁଁ ତ ଯିବାକୁ ପଛାଉ ନାହିଁ । ଅଯଥା ଖର୍ଚ୍ଚକୁ ଭୟ କରୁଥିଲି ମାତ୍ର । ଏକଥା ସତ ଯେ ମର୍ତ୍ତ୍ୟପୁରରେ ମଣିଷ ନାହାନ୍ତି ବୋଲି ଯେ ବୁର୍ନାମ ପ୍ରଚାର ହେଉଛି ତାହା ଆଦୌ ଠିକ୍ ନୁହେଁ । ମୁଁ ଛାତିରେ ହାତ ଦେଇ, ଆଖି ବୁଜିଁ, ହଲପ କରି କହି ପାରେ ଯେ ମନୁଷ୍ୟ ସମାଜ ମର୍ତ୍ତ୍ୟରୁ ଲୋପ ହୋଇ ନାହାନ୍ତି । ଦେଖନ୍ତୁ, ହତ୍ୟାକାଣ୍ଡ, ବ୍ୟଭିଚାର, ଚୋରି,ଡକାୟିତି, ନାରୀହରଣ, ଧର୍ମାନ୍ତରଗ୍ରହଣ, ଗୃହଦାହ, ପକେଟମାରୁ, ରାଜନୀତିକ ମାରପିଟ, ଅର୍ଥନୈତିକ ତସ୍କରତା ଠାରୁ ଆରମ୍ଭ କରି ମନୁଷ୍ୟଙ୍କ ଦ୍ୱାରା ହୋଇ ପାରିବା ଭଲ ମନ୍ଦ ପ୍ରକାର କାର୍ଯ୍ୟ ଯଥାବିଧି ମର୍ତ୍ତ୍ୟପୁରରେ ଦିନରାତି ୨୪ଘଣ୍ଟା ସମାନ ଭାବରେ ଚାଲିଛି । ସ୍ୱତନ୍ତ୍ର ତାର ସଂବାଦ ଆସିଛି । ଯଦି ବିଶ୍ୱାସ ନ କରିବେ ଅତି ସ୍ୱତନ୍ତ୍ର ବେତାର ସଂବାଦ ଆଣିବା ବ୍ୟବସ୍ଥା କରିଯିବ । ନ ହେଲାବେଳକୁ ଦୈନିକକାଗଜର ନିଜସ୍ୱ ପ୍ରତିନିଧିଙ୍କୁ ତଲବ କରି ଆଣିବାକୁ ହେବ ।"

ଏହା ପରେ ବ୍ରହ୍ମା ଫାଇଲ ଦେଖି ଭାରତବର୍ଷର କେତୋଟା ପ୍ରଦେଶ ଉପରେ ଆଖି ବୁଲେଇ ଦେଇ ଜାଣିପାରିଲେ—

| | | |
|---|---|---|
| ପଞ୍ଜାବରେ ହିନ୍ଦୁ ବଧ | ଶତକଡ଼ା | ୯୦ |
| ସୀମାନ୍ତରେ ସୀମନ୍ତିନୀ ହରଣ | ,, | ୮୦ |
| ବିହାରରେ ମାରଧର | ,, | ୭୦ |

ଏହା ଛଡ଼ା ଯୁକ୍ତ ପ୍ରଦେଶରେ ସାଂପ୍ରଦାୟିକ କଷ୍ଟ, କେରଳରେ ହରିଜନ ଦ୍ୱେଷ, ବମ୍ବେରେ ବ୍ରାହ୍ମଣ ନାଶ,' ବଙ୍ଗରେ ଜାଗତ ବୋଷ, ଓଡ଼ିଶାରେ ନେତୃତ୍ୱ ଦ୍ୱନ୍ଦ୍ୱ କଥା ସବୁ ବୁଝିଲେ । ତଥାପି ଅନ୍ତର ସତ୍ୟାସତ୍ୟ ଜାଣିବା ପାଇଁ ଚନ୍ଦ୍ରଗୁପ୍ତଙ୍କୁ ମର୍ତ୍ତ୍ୟକୁ ପଠାଇବା ସ୍ଥିର କଲେ । କିନ୍ତୁ ସମଗ୍ର ମର୍ତ୍ତ୍ୟ ବୁଲିଥିବାକୁ ବହୁଦିନ ଲାଗିପାରେ, ତେଣୁ ସେ ସ୍ୱତନ୍ତ୍ର ଆଦେଶ ଦେଲେ ଯେ ଏ ଯାତ୍ରାରେ କେବଳ ଭାରତବର୍ଷ ବୁଲି ଚଞ୍ଚଳ ରିପୋର୍ଟ ଦିଅ । ସେଥିରେ ମର୍ତ୍ତ୍ୟର ଅବସ୍ଥା ଅନେକ ପରିମାଣରେ ଜାଣି ହେବ ।

( ୨ )

କିଛିଦିନ ପରେ ଚନ୍ଦ୍ରଗୁପ୍ତଙ୍କଠାରୁ ବ୍ରହ୍ମାଙ୍କ ନିକଟକୁ ରିପୋର୍ଟ ଆସିଲା—

ପୃଥିବୀ ପୃଷ୍ଠରୁ ମାନବ ସମାଜ ଏ ପର୍ଯ୍ୟନ୍ତ ସଂପୂର୍ଣ୍ଣ ଲୋପ ପାଇ ନାହିଁ । ମୁଁ ସାହସ ନେଇ ହରିଇ ନାନା ସହର, ଗ୍ରାମ, ଜନପଦ, ଜିଲା, ପ୍ରଦେଶ, ରାଜଧାନୀ, ଜମିଦାରଙ୍କ ଉଆସ, ଦରିଦ୍ରଙ୍କ କୁଡ଼ିଆ, ସାଧାରଣ ପାଠାଗାର, ଅସାଧାରଣ ଉଦ୍ୟାନନିବାସ ସବୁ ବୁଲିଗଲି । ଯାହାଙ୍କୁ ଦେଖିଲି ତାଙ୍କୁ ପଚାରିଲି—

"ମହାଶୟ, ଆପଣ କିଏ ?"
ଉତ୍ତର ମିଳିଲା—"ମୁଁ ବାମପନ୍ଥୀ" ।
ଏଭଳି ପ୍ରତ୍ୟେକଙ୍କୁ ପଚାରିଲି—
"ଆପଣ ?"
"ମୁଁ ଦକ୍ଷିଣ ପନ୍ଥୀ ।"
"ଆପଣ ?"
"ଉଗ୍ର ପନ୍ଥୀ ।"
"ଆପଣ ?"

"ଅନୁଗ୍ରହ ପନ୍ଥୀ"
"ଆପଣ ?
"ତଟସ୍ଥପନ୍ଥୀ ?"
"ଆପଣ ?"
"ସାମ୍ୟବାଦୀ"
"ଆପଣ ?"
"ଅରାଜକ ବାଦୀ"
"ଆପଣ ?"
"ପ୍ରଲେଟେରିଅନ"
"ଆପଣ ?"
"ଜଳସେବୀ"
"ଆପଣ ?"
"ହରିଜନ ସେବକ"

ଏହିଭଳି ପ୍ରତ୍ୟେକ ବ୍ୟକ୍ତିଙ୍କଠାରୁ କମ୍ୟୁନିଷ୍ଟ, ସୋସିଆଲିଷ୍ଟ, ଫାସିଷ୍ଟ, ଫେଡେରେସନିଷ୍ଟ, ରିପବ୍ଲିକାନ୍, କ୍ରାନ୍ତିବାଦୀ, ସୁବିଧାବାଦୀ, ସୁଧାରବାଦୀ, ସମାଜତନ୍ତ୍ରୀ, ରାଜତନ୍ତ୍ରୀ, ସାମ୍ରାଜ୍ୟତନ୍ତ୍ରୀ, ସନାତନତନ୍ତ୍ରୀ, ମନ୍ତ୍ରୀତନ୍ତ୍ରୀ, ପ୍ରଧାନମନ୍ତ୍ରୀ, ରାଜସ୍ୱମନ୍ତ୍ରୀ ବୋଲି ପରିଚୟ ପାଇବା ଛଡ଼ା ମନୁଷ୍ୟ ଶବ୍ଦର ଗନ୍ଧ ସୁଦ୍ଧା ପାଇଲି ନାହିଁ । କିନ୍ତୁ ମୁଁ ତ ସହଜରେ ହଟିଯିବା ଜୀବ ନୁହେଁ, ସେହିପରି ପଚାରିବାରେ ଲାଗିଲି—

"ଆପଣ ?"

"ସୋଭିଏଟିଷ୍ଟ ।"

"ଆପଣ ?

"ଜର୍ଣ୍ଣାଲିଷ୍ଟ"

"ଆପଣ ?"

"ରିପୋର୍ଟର"

"ଆପଣ ?"
"ଫୁଟ୍‌ବଲ୍‌ର"
"ଆପଣ ?"
"ସୁଇମର"
"ଆପଣ ?"
"ଫେସ୍‌ର"
"ଆପଣ ?"
"ବେକାର"
"ଆପଣ ?"
"ଫିଲ୍‌ମଷ୍ଟାର"
"ଆପଣ ?"
"ଫକେଟମାର"

ଠାଏ ଦେଖିଲି ଦଳେ ଲୋକ ଦଉଡ଼ ଦଉଡ଼ ଆସୁଛନ୍ତି । ତାଙ୍କୁ ପଚାରିଲି—'ଆପଣମାନେ ଧାଉଁଛନ୍ତି କାହିଁକି ?' ଉତ୍ତର ମିଳିଲା, 'ଧାଇଁବା ଆମର 'ଡ୍ରିକ୍', ଆମ୍ଭେ ହେଉଛୁ 'ପ୍ରଗତିପନ୍ଥୀ' । ମୁଁ ଆଶ୍ଚର୍ଯ୍ୟ ହୋଇ ପଚାରି ଦେଲି—'ତାହାହେଲେ କଣ ଏ ଦେଶରେ କେହି ମଣିଷ ନାହାନ୍ତି ?'

ମୋ ପ୍ରଶ୍ନ ଶୁଣି ସେମାନେ ଠୋ ଠୋ ହସିଉଠିଲେ । କହିଲେ— "ଆରେ, ଏ ପାଗଳଟାର କଥା ଶୁଣ । ବିଂଶ ଶତାବ୍ଦୀରେ ମର୍ତ୍ତ୍ୟରେ ମଣିଷ ଆସିବେ କୁଆଡ଼ୁ ? ଦିନ ଥିଲା, ଊନବିଂଶ ଶତାବ୍ଦୀରେ ଏ ଦେଶରେ ମନୁଷ୍ୟର ସଂଖ୍ୟା ଥିଲା । ଏବେ ଚିଡ଼ିଆଖାନା ନାମକ ସ୍ଥାନରେ ଜଣେ ଅଧେ ମଣିଷ ଅଛନ୍ତି ।"

ଏ କଥା ଶୁଣି ମୋ ପିଣ୍ଡରେ ପ୍ରାଣ ପଶିଲା । ମୁଁ ସଙ୍ଗେ ସଙ୍ଗେ ଚିଡ଼ିଆଖାନାକୁ ଧାଇଁଲି । ସେଠାରେ କେତେଗୁଡ଼ିଏ ଜୀବଙ୍କୁ ଦେଖିଲି ଯାହାଙ୍କ ନାମ କି "ଜଣମଣିଷ ।" ତେଣୁ ଆପଣ ବୁଝନ୍ତୁ ମର୍ତ୍ତ୍ୟରୁ 'ମଣିଷ' ସମାଜ ଲୋପ ହୋଇ ନାହିଁ, ଏ ପର୍ଯ୍ୟନ୍ତ ଚିଡ଼ିଆଖାନାରେ "ମଣିଷ"ର ନାମ ରହିଛି ।'

# ଗଛ କଣ କହିଲା ?

ତେବେ ମୁଁ ମରିଗଲି ।

ମୁଁ ମରିବା ଆଗରୁ ମୋ ସ୍ତ୍ରୀ ମୋ ସହିତ ଛଳନା ଖେଳିଲା ।

ମୁଁ ମରିବାର କାରଣ ହେଲା ମୋ ପ୍ରତି ମୋ ସ୍ତ୍ରୀର ଛଳନା ।

ମୁଁ ଆଗେ ଥିଲି ବଡ଼ ସରଳବିଶ୍ୱାସୀ । ମାତ୍ର ସ୍ତ୍ରୀର ଛଳନା ଜାଣିପାରି ଜୀବନ ପ୍ରତି ମାୟାମମତା ଛାଡ଼ି ଦେଇ, ଘରଦ୍ୱାରକୁ ନ ଚାହିଁ, ତେବେ ଜୀବନର ଯେ ପ୍ରଣୟିନୀ ଥିଲା ତା ଆଡ଼କୁ ମୁହଁ ସୁଦ୍ଧା ନ ବୁଲାଇ ଚାଲିଗଲି । ଗଲି ଗୋଟାଏ ଗଛ ମୂଳକୁ । ଗଛରେ ଚଢ଼ି ବେକରେ ଦଉଡ଼ି ଦେଲି !

ତା ପରେ ମୋର ଅବସ୍ଥା କଣ ହେଲା କିଏ ଜାଣ ?

ବୋଧହୁଏ ଜାଣି ନାହିଁ । ଶୁଣ । ସେହିଠାରେ ମୋର ଶବ ପଡ଼ି ସଢ଼ି ମାଟି ପାଲଟି ଗଲା । ସେଇ ମାଟି ଧୂଳି ହୋଇଗଲା । ବାସ୍ତବିକ ମୋ ବେଳକୁ ଥିଲା "ମାଟିର ଏ ମର କଳେବର !"

ଧରଣୀ ବୁକୁରେ ଧୂଳି ରେଣୁ ମୁଁ ହେଲି । ତା ପରେ ଦିନେ ବର୍ଷା ହେଲା । ପାଣିରେ ମିଶିଗଲି । ପୃଥିବୀ ମୋତେ ଆଦରରେ ଗ୍ରହଣ କଲା, ଶୋଷି ନେଲା । ସେତିକିବେଳେ ମୋ ଦେହ ଝୁମି ଉଠିଲା ! ସତେ ଯେପରି ମୋ ପିଣ୍ଡରେ ପ୍ରାଣ ପଶିଲା ! ସାରଯୁକ୍ତ ଖତ ରୂପେ ମୁଁ ଗୋଟିଏ ଛୋଟ ଗଛର ଖାଦ୍ୟ ହେଲି । ମୋତେ ପାଇ ଗଛଟି ଖୁବ୍ ଆନନ୍ଦରେ ଛନ ଛନ ହେଲା ।

ଏହି ସମୟରେ ମୋ ଜୀବନ ବଡ଼ ସୁଖମୟ ହେଲା । ଗଛର ଶ୍ୟାମଳ ଡାଳ ପତ୍ର ପବନରେ ଝୁମି ଉଠିଲା । ମଞ୍ଜିସବୁ ଧୂଳି ହେଲା । ଧୂଳିରୁ ଗୋଟାଏ ଗଛରେ ପରିଣତ ହେଲା !

ଏହା ପରେ ବସନ୍ତ ଆସିଲା । ମଧୁର ପବନ ବହିଲା । ମୋର ପାଖ ପଡିଆରେ ଥିବା ତରୁଲତା ପଲ୍ଲବୀ ଉଠିଲେ । ମୁଁ ମଧ୍ୟ ହସି ଉଠିଲି । ମୋର ପତ୍ର କଅଁଳିଲା, ଫୁଲ ଫୁଟିଲା, ଜୀବନଟା ମୋର ଅପୂର୍ବ ଶୋଭାରେ ମାତି ଉଠିଲା । ମୁଁ ମଧୁମାମୟ ହୋଇ ଉଠିଲି !

ମୁଁ ହେଲି ଏକ ଗଛ । ମୋତେ ଯେ ଦେଖିଲା ସେ ସୁଖ ପାଇଲା । କୀଟ ପତଙ୍ଗ ମୋ ଦେହରେ ଲଗି ରହିଲେ । ପକ୍ଷୀ ଉଡି ଆସି ମୋର କୋଳରେ ବସି ଗୀତ ଗାଇଲେ । କେତେ ବସା ବାନ୍ଧି ରହିଲେ । ମଣିଷ ଆସି ମୋର ଛାଇ ତଳେ ଶ୍ରାନ୍ତ କ୍ଲାନ୍ତ ଭାଙ୍ଗି ଖୁସି ଗପ କରି ବୁଲିଲେ । କୋଇଲିର ଗାନ, ଭ୍ରମରର ଗୁଞ୍ଜନ ମୋତେ ଅପୂର୍ବ ଆନନ୍ଦ ଦେଲା ।

ହଠାତ୍ ଦିନେ ଏକ ସନ୍ଧ୍ୟାରେ ଛାଇ ଛାଇଆ ଆଲୋକ ଝଲକରେ ଜଣେ ସ୍ତ୍ରୀ ଲୋକ ମୋର ପାଖରେ ଆସି ଠିଆହେଲା । ତା ଆଖିରେ ଲୁହ ନ ଥିଲା । ତା ଦେହରେ ଅଳଙ୍କାର ଥିଲା । ତେଣୁ ମୁଁ ଜାଣିପାରିଲି ସେଇ ମୋର ପ୍ରଣୟିନୀ !

ମୋର ପ୍ରଣୟିନୀ ମୋତେ ଜାକି ଧରିଲା ହାତ ବଢ଼େଇ । ସଙ୍ଗେ ସଙ୍ଗେ ଦିଏ ଜଣେ ପ୍ରେମିକ ତାକୁ ଆସି କୋଳକୁ ନେଇଗଲେ । ସେଇ କାରଣରୁ ମୁଁ ବୁଝିଲି ଯେ ସେ ମୋର ସ୍ତ୍ରୀ ଥିଲା ।

ସେ ଦୁହେଁ ମୋର ଦେହକୁ ଆଉଜି କେତେ କଣ ପ୍ରେମାଳାପ କଲେ । କଥା କହୁ କହୁ ନଖରେ ମୋ ଦେହ ଖୋଳି ପକାଇଲେ । ମୁଁ ଗଛଟା କିଛି ବୁଝିପାରୁ ନାହିଁ ବୋଲି ମନେକରି ସେମାନେ ମନବୋଧ କରି କଥାବାର୍ତ୍ତା ହେଲେ—ହସିଲେ, ମାନ ଅଭିମାନ କଲେ ।

ବସନ୍ତ ଗଲା । ଖରା ହେଲା । ବର୍ଷା ଶେଷ ହେଲା । ଶରତ ଆସିଲା । ପୁଣି ଦୁଇଜଣ ମୋର ପାଖକୁ ଆସିଲେ । ହାତକୁ ହାତ ଛନ୍ଦି, କାନ୍ଧକୁ

ତାଙ୍କ ଉପରେ, କେତେବେଳେ ମୁହଁ ପୋଡ଼, କେତେବେଳେ ମୁହଁ ଟେକି ଦୁହେଁ ବୁଲି ବୁଲି ଆସିଲେ । କିନ୍ତୁ ଯେଉଁ ପୁରୁଷ ଏଥର ଆସିଲେ ସେ ମୋ ସ୍ତ୍ରୀଙ୍କର ନୂତନ ସ୍ୱାମୀ ନୁହନ୍ତି, ନୂତନ ପରିଚିତ ବନ୍ଧୁ !

ମୋର ସମଗ୍ର ଫଳ, ପତ୍ର, ପୁଷ୍ପ ସେମାନଙ୍କ ଅଜାଣତରେ କମ୍ପି ଉଠିଲା । ମୋର ଭିତରର ଜୀବନଧାରା ସତେ ଅବା କ୍ଷଣକାଳ ଚରଳି-ଗଲା । ମୁଁ ମୋର ଡାଳପତ୍ର ହଲେଇ ଦେଇ ମାନବର ଅବୋଧ ଭାଷାରେ କହିଲି—"ନାସ୍ତି, ନାସ୍ତି, ତୁମେ କିଣ ଏ ପଥ ଛାଡ଼ । ଆଉ ଅନ୍ୟ ପଥ ଜାଣ ନାହିଁ ? ତୁମର ଏ ଢଙ୍ଗ କି ବଦଳିବ ନାହିଁ ?"

ଏହା ପରେ ଦିନେ ମୋ ସ୍ତ୍ରୀର ସ୍ୱାମୀ ଆସିଲେ । ସେ କିନ୍ତୁ ଆସିଲେ ଏଥର ଏକାକୀ । ମନରେ ତାଙ୍କର ଗଭୀର କ୍ରୋଧ, କ୍ଷୋଭ ଥିଲା । ନିଜକୁ ଅଲୋଡ଼ା ବୋଲି ସେ ମନେ କରୁଥିଲେ । ସେ କାନ୍ଦିଲେ । ଅଭି-ଶାପ ଦେଲେ । ମୋର ପାଖେ ଠିଆ ହୋଇ କିଣ ଖୁବ ଖୁବ ନଖରେ ମୋ ଦେହର ବକଳା ଖୋଳିଲେ । ତାଙ୍କୁ ଯେ ପ୍ରଣୟିନୀ ଠକିଛନ୍ତି— ଏ କଥା ତାଙ୍କ ପ୍ରାଣକୁ ବାଧୁଥିଲା । ମୋତେ ମଧ୍ୟ ଏ କଥା ବଡ଼ ବାଧିଲା । ଏହି ବନ୍ଧୁଙ୍କ ପାଇଁ ମୋ ପ୍ରାଣରେ ବଡ଼ ସହାନୁଭୂତି ଦେଖା ଦେଲା । ଅନେକ ଦିନ ତଳୁ ଏପରି କଥା ଦେଖି ମୋ ହୃଦୟ ଫାଟି ପାଲଟି ଯାଇଥିଲେ ମଧ୍ୟ ଆଉ ଥରେ ଦେଖି ସଂଭାଳି ପାରିଲି ନାହିଁ । ସାଇଁ ସାଇଁ ଶବ୍ଦରେ ଦୀର୍ଘ ନିଶ୍ୱାସ ଛାଡ଼ିଲି ।

ଏହା ପରେ କିଛି ଗଲା । ଏଇ ବନ୍ଧୁ ପୁଣି ଥରେ ମୋ ପାଖକୁ ଆସିଲେ । ମୋତେ ଆଉଜି ଠିଆ ହେଲେ । ସେ କାନ୍ଦିଲେ, ହାହାକାର କଲେ, ମୋ ଚାରିପଟେ ବୁଲିଲେ ବୁଲିଲେ, ବୁଲିଗଲେ । ପୁଣି ଫେରି-ଆସିଲେ । ତା ପରେ ମୋର ଉପରେ ଚଢ଼ି ମୋର ଦେହରେ ଖଣ୍ଡିଏ ଦଉଡ଼ି ବାନ୍ଧିଲେ । ମୁଁ ଥରି ଗଲି ।

ମାତ୍ର ସେଥର ସେ ଫେରି ଗଲେ, ବେକରେ ଦଉଡ଼ି ଦେଲେ ନାହିଁ । ପୁଣି ଦିନେ ଫେରି ଆସି ଦଉଡ଼ି ଖୋଜିଲେ । ବର୍ଷା ଝରୁଥିଲା, ଜଗତ କାନ୍ଦୁଥିଲା, ମୋର ଦେହ ଥରୁଥିଲା, ସେ ତାଙ୍କ ଦଉଡ଼ିଟା ଖୋଜି ପାଇଲେ ନାହିଁ ! ଖଣ୍ଡିଏ ସୁନ୍ଦର ମରୁ ଚଦର କାଢ଼ିଲେ । ମୁଁ ତାହା ଦେଖି ବେଶ୍ ଚିହ୍ନି ପାରିଲି । ଦିନେ ହଳେ ବନାରସୀ ପାଟ ମୁଁ ଆଣିଥିଲି । ତାରି ଚଦର ସେଟି । ତାକୁ ଧରି ଦିନେ ଅଙ୍ଗାରରେ ହସି ହସି ମୋର ସେଇ ଦିନର—ସେଇ ଅଙ୍ଗାରର ପ୍ରଣୟିନୀକୁ ପ୍ରେମରେ ବାନ୍ଧି ଥିଲି ! ତେଣୁ ଚିହ୍ନିଲି ସେଇ ମୋର ଚଦର ।

ସେ ମୋରି ଉପରେ ଚଢ଼ି ମୋରି ଚଦରକୁ ମୋର ଏକ ମୋଟା ମଜବୁତ ଡାଳରେ ବାନ୍ଧିଲେ । ତଥାପି ମୁଁ ଆନନ୍ଦ ଅନୁଭବ କରି-ପାରିଲି ନାହିଁ । ବରଂ ଦୁଃଖରେ ମୁଣ୍ଡ ଲଇଁଗଲା । ମୋ ବୁକୁକୁ ଶୂଳ ବାନ୍ଧିଲା, ଯଦିବ ବୁକୁଟା ମୋର କାଠ ପାଲଟି ଯାଇଥିଲା । ମୁଁ ସେତେ-ବେଳେ ମନେକଲି ସତେ ଯେପରି ନିଜ ବେକରେ ମୁଁ ଦଉଡ଼ି ଦେଇ ପ୍ରାଣ ହରାଉଛି ! !

ପବନ ବନ୍ଦ ହୋଇଗଲା ।

ତରୁପତ୍ର ଦୋହଲିଗଲା ।

କନ୍ଦର୍ପଙ୍କର ପ୍ରାଣବାୟୁ ଉଡ଼ିଗଲା ।

ମୁଁ ବଞ୍ଚି । କାଠ ପରି ଠିଆ ହୋଇ ସବୁ ଦେଖିଲି !

——ଃଃ——

# ଗଧିଆ କଣ କହିଲା ?

ଗଧିଆର ଥାନ ଜଙ୍ଗଲ ଭିତରେ । ସନ୍ଧ୍ୟା ହେଲେ ଗଧିଆ ଜଙ୍ଗଲରୁ ବାହାରି ପଦାକୁ ଆସେ । ଛେଳି ଗୋଠ ପାଖେ ଲେଉଟି-ପଡ଼ି ରହେ । ଜଗାଳି ଶୋଇ ରହିଲେ ଗୋଟାଏ ଦୁଇଟା ଝାମ୍ପି ନେଇଯାଏ ।

ଗଧିଆ ଆସେ ଗାଁ ପାଖକୁ । ଗାଁ ଯେତେବେଳେ ନିଶବ୍ଦ ହୁଏ ବାଛୁରିଟାଏ କୁକୁରଟାଏ ସେ ଖୋଜି ବୁଲେ । କାହା କାହାର ବାଡ଼ପଟ ଡିହାଳରେ ପଶି ବାଛୁରୀଟାଏ ବା ଚାପିଦିଏ ।

ଗଧିଆ ଦିନେ ଧରା ପଡ଼ିଲା । ଯନ୍ତା ଭିତରେ ଲୋକେ ତାକୁ ଧରି ଆଣି ବଡ଼ଦାଣ୍ଡରେ ରଖିଲେ । ପିଲାଏ ତାକୁ ଢେଲା ମାରିଲେ, ତାକୁ ଗେଞ୍ଜିଲେ, ଖେଳେଇ ହେଲେ । ଉପାସରେ ତା ପେଟ ଜଳିଲା । ଆଖିରୁ ତାର ଲୁହ ବୋହିଲା । ସ୍ୱପ୍ନରେ ତାର ଦେହ ଥରିଲା । ଛେଳି, କୁକୁର ବାଛୁରୀ ଅଭାବରେ ତାର ମୁନ୍ଦାଅଁ ଦାନ୍ତମୂଳ ସବୁ ଖୁଣ୍ଟେଇ ହେଲା । ସେ ଯନ୍ତାକୁ ରାମ୍ପୁଡ଼ିଲା, ବାଡ଼କୁ ଧକ୍କା ମାରିଲା, ଲାଙ୍ଗୁଡ଼ ହଲେଇ ବେଳେ ବେଳେ ପଡ଼ି ରହିଲା ଲମ୍ଫମାରି ଖସିଯିବାକୁ । ଲୋକେ ଯନ୍ତା ପାଖେ ବସି ଖବର କାଗଜ ପଢ଼ିଲେ, ଯୁଦ୍ଧକଥା ପକାଇଲେ । ଆକାଶରେ ବ୍ୟୋମଯାନ ଗର୍ଜନ କରି ଉଡ଼ିଗଲା । ବୁଲାବଜାଳି କାହୁଁ ଆସି ଚବୁଣେ ଦରଦାମ ବଢ଼ାଇ ଜିନିଷର ନାଁ ଗାଇ ଦେଇ ଚାଲିଗଲା । ନାହାକ ଆସି କହିଦେଲା—ଏ ବର୍ଷର ଫସଲ ସାତଭାଗ, ମଣ୍ଡା ଆଠଭାଗ, ରୋଗ ଦଶ ଭାଗ, ଅପମୃତ୍ୟୁ ବାରଭାଗ, ଅଭାବ ଷୋଳଭାଗ । ସମସ୍ତେ ଏକମନ ଏକ ଧ୍ୟାନରେ ଏକଥା ଶୁଣି କୁହାକୁହି ହେଲେ । ମାତ୍ର ଗଧିଆ ଯନ୍ତା ଭିତରେ ଥାଇ ମନେ ମନେ କହିଲା—"ହେ ଭଗବାନ, ଏ ମଣିଷ-ମାନଙ୍କ କେବେ ଗଧିଆ ପାଲଟିବେ, ସଂସାରରେ ଶାନ୍ତି ବସିଯିବ ।"

ଗଧିଆ ଏ କଥା ମନେ ମନେ ଭାଳୁଁଥି କହିଲା ତାହା ସ୍ପଷ୍ଟ ଜଣା ପଡ଼ିଲା । ଗାଁର ସମସ୍ତେ ଯେତେବେଳେ ଘୋର ନିଦ୍ରାରେ ବୁଡ଼ି ରହିଲେ; ଅନ୍ଧାର ଛଡ଼ା ଅନ୍ୟ କେଉଁଠି ନ ଥିଲା, ସେତିକିବେଳେ ଗଧିଆ ପାଟିକରି କହିଲା—

"ହେ ମଣିଷ ! ମତେ କହୁଛ ହିଂସ୍ର, ମତେ କହୁଛ ଦୁଷ୍ଟ ! କଥାଟା ନିତାନ୍ତ ମିଛ ନୁହେଁ, ଏ କଥା ମୁଁ ମାନୁଛି । ବେଳେ ବେଳେ ମୁଁ ବଗଡ଼ଟାଏ ବା କୁକୁରଟାଏ, କେବେ କେବେ ଛେଳିଟାଏ ବା ବାଛୁରୀଟାଏ ମାରି ଖାଇ ଦିଏ । ତୁମରି ଭିତରେ ମଣିଷ ଅଛନ୍ତି ଯେଉଁ-ମାନେ କି ବେଳେ ବେଳେ ଗୋଟାଏ ଗୋଟାଏ ଦେଶ; ଗୋଟାଏ ଗୋଟାଏ ଜାତିକି ଗିଳି ଦେଉଛନ୍ତି ! ଲକ୍ଷ ଲକ୍ଷ ଜାତିଭାଇ ମଣିଷଙ୍କୁ ଖାଇ ଶେଷ କରି ଦେଉଛନ୍ତି, ବଂଶ ଲୋପକରି ଦେଉଛନ୍ତି ! ତଥାପି ମଣିଷଙ୍କୁ କେହି କହୁ ନାହିଁ "ମଣିଷ ହିଂସ୍ର ।" ମୁଁ ଗଧିଆ ମୋର ଦାନ୍ତରେ ଶିକାର କରେ, ଦାନ୍ତରେ ମାରେ, ମାତ୍ର ମଣିଷ ମାରେ ବୁଦ୍ଧିରେ, ବୁଦ୍ଧିରେ ସେ ସଂସାର ଖାଏ ।

"ମତେ କହୁଚ ପଶୁ ? ମଣିଷ ଏକ ବଡ଼ଜ ପଶୁ ! ସେ ବେଢ଼ାଏ, ଲୁଟାଏଣ୍ଡି କରେ, ହତ୍ୟାମ୍ବ କରେ, ଗ୍ରାମନଗର ଧ୍ୱଂସ କରେ, ରାଜ୍ୟ ଛାରଖାର କରେ ଏବଂ ସହସ୍ର ବର୍ଷତଳର ମୋର ଜାତିଭାଇ କୁକୁରକୁ ଲୁଣ୍ଠିଦେଇ, ପାଳି, ଠକି ମୋର ବିରୁଦ୍ଧରେ ଲଗାଏ !

"ମଣିଷ ଆଉ ଗଧିଆ ଭିତରେ କିଏ ବେଶୀ ଲୋଭୀ ? ମୋର ଦରକାରବେଳେ ମୁଁ ଖାଦ୍ୟ ଖୋଜେ, କିନ୍ତୁ ମଣିଷ ଦଶ ପନ୍ଦର ବର୍ଷ ପାଇଁ ଖାଦ୍ୟ ଜମାଇ ରଖେ । ଦିନକେ ପାଞ୍ଚଥର ଖାଏ । ଭୋକ ହେଲେ ମୁଁ ଖାଏ, କିନ୍ତୁ ମଣିଷ ଖାଏ ଖାଇବାବେଳ ହେଲା ବୋଲି । ମୁଁ ପ୍ରେମ ଅନୁଭବ କଲେ ପ୍ରେମକରେ, କିନ୍ତୁ ମଣିଷ ପ୍ରେମକରେ ସମୟରେ ଓ ଅସମୟରେ, ସତରେ ଏବଂ ଛଳନାରେ । ଖାଦ୍ୟ ପାଖରେ ଗୋଟାଏ ଗଧିଆ ଅନ୍ୟକୁ ଦେଖି ବସି ରହେ ନାହିଁ, କିନ୍ତୁ ଗଧିଆ

ମଣିଷ ସୃହିଁଥାଏ ଧନୀ ମଣିଷର ଭଣ୍ଡାରକୁ ଉପାସରେ । ତଥାପି ମୁଠାଏ ପାଏ ନାହିଁ । ପଶୁପକ୍ଷୀଙ୍କ ଚମ, ଲୁମ, ହାଡ଼, ଶିଙ୍ଗରେ ମଣିଷ ତା ପ୍ରଣୟିନୀପାଇଁ ପୋଷାକପତ୍ର, ସୌଖିନ ଜିନିଷ ତିଆରି କରେ, ମଲାମୁଣ୍ଡକୁ ଘରେ ସଜେଇ ରଖେ, କିନ୍ତୁ ମୋର ତ ପୁଣି ଜଙ୍ଗଲ ଭିତରେ ପ୍ରଣୟିନୀ ଅଛି, କହ ତ ମୁଁ କେତୋଟା ମଣିଷ ଚମରେ ତା ପାଇଁ ପୋଷାକ କରିଛି ? କେତୋଟା ମଣିଷମୁଣ୍ଡ ମୁଁ ସଜାଇ ସାଇତି ରଖିଛି ? କେତୋଟା ମଣିଷ ହାଡ଼ରେ ତା ପାଇଁ ଅଳଙ୍କାରପତ୍ର ଗଢିଛି ! ହେ ଭଗବାନ ! ମଣିଷ କେବେ ଗଧିଆ ପାଲଟିବ, ସଂସାରରେ ସମସ୍ତେ ସ୍ୱାଧୀନ ହେବେ, ଶାନ୍ତିରେ ରହିବେ, ସତ୍ୟରେ ଚଳିବେ !”

ଏ କଥା ଗାଁବାଲା ସ୍ରାତିରେ ସ୍ୱପ୍ନରେ ଶୁଣି ସକାଳୁ ଲୁହାଲୁହି ହେଲେ—

ଏ ସ୍ୱପ୍ନ ନା ସତ୍ୟ ? ଆମେସବୁ ମଣିଷ ନା ଗଧିଆ ?

Printed by B. K. Kar, B. A.,
at the Saraswata Press, Cuttack—1948